# ଆଚାର ଶିକ୍ଷା ।

---

ଶ୍ରୀ ଗୋବିନ୍ଦରଥଙ୍କ ଦ୍ୱାରା

ସଙ୍କଳିତ ଓ ସଂଶୋଧିତ ହୋଇ

ଦ୍ୱିତୀୟବାର ପ୍ରକାଶିତ ହେଲା ।

B. S. DAS, Printer,

Mukur Press. Cuttack.

1910.

ମୂଲ୍ୟ ୦ / ଏକଅଣା ।

# ଆଚାର ଶିକ୍ଷା ।

---

ଶ୍ରୀଗୋବିନ୍ଦରଥଙ୍କ ଦ୍ୱାରା

ସଂଗୃହୀତ ଓ ସଂଶୋଧିତ ହୋଇ

ପ୍ରଥମବାର ପ୍ରକାଶିତ ହେଲା ।

B. S. DAS, Printer,

Mukur Press, Cuttack.

1910.

ମୂଲ୍ୟ ୦ / ଏକଅଣା ।

# ଆଚାର ଶିକ୍ଷା ।



ଉଦିତେ ଜଗନ୍ନାଥେ ଯଃ କୁର୍ଯ୍ୟାଦନ୍ତଧାବନଂ ।
ସ ପାପିଷ୍ଠଃ କଥଂ ବ୍ରୂତେ ପୂଜୟାମି ଜନାର୍ଦ୍ଦନଂ । ୧ ।

ଜଗତ୍ପତି ସୂର୍ଯ୍ୟ ଉଦୟ ହେଲା ଉତ୍ତାରୁ ଯେ ଜନ ଦାନ୍ତ ଘଷେ ସେ ପାପିଷ୍ଠ କିପରି କହିବ ଯେ ମୁଁ ବିଷ୍ଣୁଙ୍କୁ ପୂଜାକରିବି । ଅତଏବ ସୂର୍ଯ୍ୟ ଉଦେ ହେଲା ପୂର୍ବରୁ ଦନ୍ତଧାବନ କରିବା ଉଚିତ । ୧ ।

ଦକ୍ଷିଣାଭିମୁଖୋ ଭୂତ୍ୱା ପଶ୍ଚିମାଭିମୁଖସ୍ତଥା ।
ନ ଦନ୍ତଧାବନଂ କୁର୍ଯ୍ୟାତ୍ କୁର୍ବଂଶ୍ଚେନ୍ନାରକୀଭବେତ୍ । ୨ ।

ଦକ୍ଷିଣମୁଖ ବା ପଶ୍ଚିମ ମୁଖ ହୋଇ ଦନ୍ତଧାବନ କରିବ ନାହିଁ । ଯେ ଦକ୍ଷିଣ ବା ପଶ୍ଚିମକୁ ମୁଖ କରି ଦନ୍ତଧାବନ କରେ ସେ ନରକଗାମୀ ହୁଏ । ୨ ।

ମଧ୍ୟମାନାମିକାଭ୍ୟାଂ ଚ ବୃଦ୍ଧାଙ୍ଗୁଷ୍ଠେନ ଚ ଦ୍ୱିଜଃ ।
ଦନ୍ତାନାଂ ଧାବନଂ କୁର୍ଯ୍ୟାତ୍ତର୍ଜନ୍ୟା ନ କଦାଚନ । ୩ ।

ମଧ୍ୟମା, ଅନାମିକା ଓ ବୃଦ୍ଧାଙ୍ଗୁଳିଦ୍ୱାରା ଦନ୍ତଧାବନ କରିବ । କିନ୍ତୁ କଦାପି ତର୍ଜନୀ ଅଙ୍ଗୁଳିରେ ଦନ୍ତଧାବନ କରିବ ନାହିଁ । ୩ ।

ଅଶ୍ୱତ୍ଥବଟବିଲ୍ୱାନାଂ ଧାତ୍ର୍ୟାଃ କାଷ୍ଠିକସ୍ୟ ବୁଧଃ ।
ନ ଦନ୍ତଧାବନଂ କୁର୍ଯ୍ୟାତ୍ କୁର୍ଯ୍ୟାଚ୍ଚେନ୍ନାରକୀ ଭବେତ୍ । ୪ ।

ଅଶ୍ୱତ୍ଥ, ବଟ ବିଲ୍ୱ ଓ ଅଁଳା କାଷ୍ଠରେ ପଣ୍ଡିତ ବ୍ୟକ୍ତି ଦନ୍ତଧାବନ କରିବ ନାହିଁ ଏ ଦାନ୍ତକାଠିରେ ଯେ ଦାନ୍ତଘଷେ ସେ ନରକଗାମୀ ହୁଏ

ଯଃ ସ୍ନାନସମୟେ କୁର୍ଯ୍ୟାନ୍ନକୁର୍ଯ୍ୟାଦନ୍ତଧାବନଂ ।
ନସ୍ୱଗାଃ ପିତରସ୍ତେ ଯାନ୍ତି ତସ୍ୟ ଦେବାନରର୍ଷୟଃ ॥ ୫ ।

ଯେବ୍ୟକ୍ତି ଦନ୍ତଧାବନର ଯଥୋକ୍ତ ସମୟରେ ଦନ୍ତଧାବନ ନକରି ସ୍ନାନସମୟରେ ଦନ୍ତଧାବନକରେ ତାହାର ପିତୃଲୋକ ଦେବଲୋକ ନରଲୋକ; ଓ ଋଷିମାନେ ପାଣି ନ ପାଇ ନୈରାଶ ହୋଇ ଯାନ୍ତି । ୫ ।

ଦନ୍ତସ୍ୟ ଧାବନଂ କୁର୍ଯ୍ୟାଦ୍ ଯୋମଧ୍ୟାହ୍ନାପରାହ୍ନୟୋଃ ।
ତସ୍ୟ ପୁଷ୍ପଂ ନ ଗୃହ୍ଣନ୍ତି ଦେବତାଃ ପିତରସ୍ତ ଜଳଂ । ୬ ।

ଯେ ମଧ୍ୟାହ୍ନ ଆଉ ଅପରାହ୍ନ କାଳରେ ଦନ୍ତଧାବନ କରେ ତାହାର ଦେଉ ପୁଷ୍ପକୁ ଦେବତାମାନେ ଗ୍ରହଣକରନ୍ତିନାହିଁ ଆଉ ପିତୃ-ଲୋକମାନେ ତାହାହସ୍ତରୁ ଜଳଗ୍ରହଣ କରନ୍ତି ନାହିଁ । ୬ ।

ଉପବାସଦିନେ ବିପ୍ର ପିତୃଶ୍ରାଦ୍ଧଦିନେ ତଥା ।
ନ ତୁ ତତ୍ଫଳମାପ୍ନୋତି ଦନ୍ତଧାବନକୃନ୍ନରଃ । ୭ ।

ଯେଉଁ ବ୍ୟକ୍ତି ଉପବାସଦିବସରେ କିମ୍ବା ପିତୃଶ୍ରାଦ୍ଧଦିବସରେ ଦନ୍ତଧାବନ କରେ ତାହାର ଉପବାସର ଫଳ ଆଉ ପିତୃ ଶ୍ରାଦ୍ଧର ଫଳ ହୁଏ ନାହିଁ । ୭ ।

ପ୍ରାତଃସ୍ନାନେ ବ୍ରତେ ଶ୍ରାଦ୍ଧେ ଦ୍ୱାଦଶ୍ୟାଂ ଗ୍ରହଣେ ତଥା ।
ମଦ୍ୟଲେପସମଂ ତୈଳଂ ତସ୍ମାତ୍ତୈଳଂ ବିବର୍ଜୟେତ୍ । ୮ ।

ବ୍ରତୋପଲକ୍ଷ୍ୟପ୍ରାତଃସ୍ନାନରେ ଆଉ ବ୍ରତରେ ଏବଂ ଶ୍ରାଦ୍ଧଦିବସରେ ଦ୍ୱାଦଶୀ ତିଥିରେ ଗ୍ରହଣସମୟରେ ତୈଳ ଗ୍ରହଣ ମଦ୍ୟଲେପନ ତୁଲ୍ୟ ହୁଏ ଅତଏବ ଏହି ଏହି ଦିବସମାନଙ୍କରେ ତୈଳବର୍ଜନ କରିବ । ୮ ।

ତୁଳାମକରମେଷେଷୁ ପ୍ରାତଃସ୍ନାନଂ ବିଧୀୟତେ ।
ହବିଷ୍ୟଂ ବ୍ରହ୍ମଚର୍ଯ୍ୟଂ ଚ ମହାପାତକନାଶନଂ । ୯ ।

କାର୍ତ୍ତିକ, ମାଘ, ଓ ବୈଶାଖମାସରେ ପ୍ରାତଃସ୍ନାନ ଓ ହବିଷ୍ୟ ଭୋଜନ କରି ବ୍ରହ୍ମଚର୍ଯ୍ୟ ପାଳନକଲେ ମହାପାତକ ନାଶ ହୁଏ । ୯ ।

ଅମାସ୍ନାନଂ ଗଯ୍ଯାଶ୍ରାଦ୍ଧଂ ଦକ୍ଷିଣାମୁଖଭୋଜନଂ ।
ନ ଜୀବତ୍ ପିତୃକଃ କୁର୍ଯ୍ୟାତ୍ କୃତେତ ପିତୃହା ଭବେତ୍ ।୧୦ ।

ଯାହାର ପିତା ଜୀଇ ଥାଏ ସେ ବ୍ୟକ୍ତି ଅମାବାସ୍ୟା ନିମିତ୍ତକସ୍ନାନ, ଗଯ୍ଯାଶ୍ରାଦ୍ଧ ଓ ଦକ୍ଷିଣକୁ ମୁଖକର ବସି ଭୋଜନ କରିବନାହିଁ କଲେ ପିତୃଘାତପାପରେ ଲିପ୍ତ ହୁଏ । ୧୦ ।

କରେଣ ମାର୍ଜିତଂ ଗାତ୍ରଂ ସ୍ନାନବସ୍ତ୍ରେଣ ବା ଯଦି ।
ଶୁନୋଚ୍ଛିଷ୍ଟଂ ଭବେଦ୍‌ଗାତ୍ରଂ ପୁନଃ ସ୍ନାନେନ ଶୁଧ୍ୟତି । ୧୧ ।

ହସ୍ତଦ୍ୱାରା କିମ୍ବା ସ୍ନାନବସ୍ତ୍ରଦ୍ୱାରା ଗାତ୍ରମାର୍ଜନ କଲେ ସେ ଦେହ କୁକ୍କୁରର ଉଚ୍ଛିଷ୍ଟ ହୁଏ । ପୁନର୍ବାର ସ୍ନାନ କଲେ ଯାଇ ଶୁଦ୍ଧ ହୁଏ ।୧୧।

ଈଷଦ୍‌ଧୌତଂ ସ୍ତ୍ରିୟା ଧୌତଂ ଯଦ୍‌ଧୌତଂ ରଜକେନ ତୁ ।
ଅଧୌତଂ ତଦ୍ବିଜାନୀୟା ଦଶାଦକ୍ଷିଣପଶ୍ଚିମଂ । ୧୨ ।

ଅଳ୍ପଧୌତ ବସ୍ତ୍ର, ସ୍ତ୍ରୀ ଦ୍ୱାରା ଧୌତ ବସ୍ତ୍ର, ରଜକଦ୍ୱାରା ଧୌତବସ୍ତ୍ରକୁ ଅଧୌତ ବୋଲି ଜାଣିବ ଏବଂ ଦକ୍ଷିଣ ପଶ୍ଚିମରେ ଓଦାଲୁଗା ଶୁଖାଇବାପାଇଁ ଦଶୀ ରଖିଲେ ସେ ବସ୍ତ୍ର ଅଧୌତ ତୁଲ୍ୟ ହୁଏ । ୧୨ ।

ଶୁଷ୍କଶାକଂ ବୃଥା ମାଂସଂ କରେଣ ମଥିତଂ ଦଧି ।
ତର୍ଜନ୍ୟା ଦନ୍ତକାଷ୍ଠଂ ଚ ସଦ୍ୟୋଗୋମାଂସଭକ୍ଷଣେ । ୧୩ ।

ଶୁଖିଲା ଶାଗ, ଯଜ୍ଞବ୍ୟତିରିକ୍ତ ପଶୁରମାଂସ, ହସ୍ତମଥିତ ଦଧି, ତର୍ଜନୀ-ଅଙ୍ଗୁଳିଧୃତ ଦନ୍ତକାଷ୍ଠ ଏମାନେ ସଦ୍ୟ ଗୋମାଂସ ତୁଲ୍ୟ ହୁଅନ୍ତି ଏମାନଙ୍କୁ ଭକ୍ଷଣ କଲେ ସଦ୍ୟଗୋମାଂସ ଭକ୍ଷଣ କଲା ପ୍ରାୟ ହୁଏ ।

ଅପ୍ରାପ୍ତେ ଦନ୍ତକାଷ୍ଠାନାଂ ପ୍ରତିଷିଦ୍ଧ ଦିନେ ତଥା ।
ଅପାଂ ଦ୍ୱାଦଶଗଣ୍ଡୂଷୈ ର୍ମୁଖଶୁଦ୍ଧିର୍ବିଧୀୟତେ । ୧୪ ।

ଦନ୍ତକାଷ୍ଠର ଅପ୍ରାପ୍ତିରେ ଏବଂ ପ୍ରତିଷିଦ୍ଧଦିବସରେ ଦ୍ୱାଦଶଗଣ୍ଡୂଷ-ଜଳରେ ମୁଖଶୁଦ୍ଧି କରିବ । ୧୪ ।

ଦେବାର୍ଚ୍ଚାଚମନସ୍ନାନବ୍ରତଶ୍ରାଦ୍ଧକ୍ରିୟାଦିଷୁ ।
ନଭବେନ୍ମୁକ୍ତକେଶଶ୍ଚ ନୈକବସ୍ତ୍ରଧରସ୍ତଥା । ୧୫ ।

ଦେବାର୍ଚ୍ଚନା, ଅଚମନ, ସ୍ନାନ ବ୍ରତ ଓ ଶ୍ରାଦ୍ଧାଦକ୍ରିୟାମାନଙ୍କରେ ମୁକ୍ତ-କେଶ କିମ୍ବା ଏକବସ୍ତ୍ରଆସୀ ହେବନାହିଁ । ୧୫ ।

ଯଜ୍ଞଦାନତପଃଶ୍ରାଦ୍ଧଂ ବୃଥା ଚ ପିତୃତର୍ପଣଂ ।
ବୃଥା ଦେବତ ଦ୍ୱିଜେନ୍ଦ୍ର! ଊର୍ଦ୍ଧ୍ୱପୁଣ୍ଡ୍ର ବନା କୃତଂ । ୧୬ ।

ଯଦି କୌଣସି ବ୍ୟକ୍ତି ଊର୍ଦ୍ଧ୍ୱପୁଣ୍ଡ୍ରତେଥା ନ ଦେଇ ଯଜ୍ଞ, ଦାନ, ତପସ୍ୟା, ଶ୍ରାଦ୍ଧ ଦେବକାର୍ଯ୍ୟ ଓ ପିତୃତର୍ପଣ କରେ ହେ ଦ୍ୱିଜେନ୍ଦ୍ର ତାହାର ସେ ସବୁ ବୃଥା ହୋଇ ଯାଏ । ୧୬ ।

ଊର୍ଦ୍ଧ୍ୱପୁଣ୍ଡ୍ରଂମୃଦା କୁର୍ଯ୍ୟାତ୍ରିପୁଣ୍ଡ୍ରଂ ଭସ୍ମନା ସଦା ।
ତିଲକଂ ବୈଦ୍ୱିଜାଃ କୁର୍ଯ୍ୟୁଶ୍ଚନ୍ଦନେନ ଯଥେଚ୍ଛୟା । ୧୭ ।

ଊର୍ଦ୍ଧ୍ୱପୁଣ୍ଡ୍ର ମୃତ୍ତିକାଦ୍ୱାରା କରାଯାଏ । ତ୍ରିପୁଣ୍ଡ୍ର ଭସ୍ମଦ୍ୱାରା କରାଯାଏ କିନ୍ତୁ ଦ୍ୱିଜାତିମାନେ ଚନ୍ଦନଦ୍ୱାରା ଇଚ୍ଛାନୁସାରେ ତିଲକ ଗ୍ରହଣ କର ପାରବେ । ୧୭ ।

ଊର୍ଦ୍ଧ୍ୱପୁଣ୍ଡ୍ରଂଦ୍ୱିଜଃ କୁର୍ଯ୍ୟାତ୍ କ୍ଷତ୍ରିୟସ୍ତୁ ତ୍ରିପୁଣ୍ଡ୍ରକଂ ।
ଅର୍ଦ୍ଧଚନ୍ଦ୍ରଞ୍ଚ ବୈଶ୍ୟସ୍ତୁ ବର୍ତ୍ତୁଳଂ ଶୂଦ୍ରଜାତିଷୁ । ୧୮ ।

ବ୍ରାହ୍ମଣ ଊର୍ଦ୍ଧ୍ୱପୁଣ୍ଡ୍ର କରବ, କ୍ଷତ୍ରିୟ ତ୍ରିପୁଣ୍ଡ୍ର କରବ । ବୈଶ୍ୟ ଅର୍ଦ୍ଧଚନ୍ଦ୍ରାକୃତି ତିଲକ ଦେବ ଓ ଶୂଦ୍ର ବର୍ତ୍ତୁଳାକାର ତିଲକ ଧାରଣ କରବ । ୧୮ ।

ଅର୍ଦ୍ଧବାସାଃ କୃତାଭ୍ୟଙ୍ଗୋ ଜଲେ ତିଷ୍ଠତି ଯୋ ନରଃ ।
ନମସ୍କୁର୍ବତ୍ୟୋ ନମସ୍କୁର୍ଯ୍ୟାଦ୍ଦନ୍ତି ପୁଣ୍ୟଂ ପୁରା କୃତଂ । ୧୯ ।

ଯେଉଁ ନର ଓଦାଲୁଗା ପିନ୍ଧି, ତୈଳଗ୍ରହଣକରି ବା ଜଳମଧ୍ୟରେ ଠିଆ ହୋଇ ନମସ୍କାର ଗ୍ରହଣ ବା ନମସ୍କାର କରେ ତାହାର ପୂର୍ବକୃତ ପୁଣ୍ୟ ନଷ୍ଟ ହୁଏ । ୧୯ ।

ପୁଷ୍ପହସ୍ତୋ ବାରହସ୍ତ ସ୍ତୈଳାଭ୍ୟଙ୍ଗୋ ଜଲେସ୍ଥିତଃ ।
ଅଶୀର୍ବାଦା ନମସ୍କର୍ତ୍ତା ଉଭୟୋ ନରକଂ ବ୍ରଜେତ୍ । ୨୦ ।

ପୁଷ୍ପହସ୍ତ, ବା ଜଳହସ୍ତ, ତୈଳାଭ୍ୟଙ୍ଗ ଓ ଜଳମଧ୍ୟସ୍ଥିତ ବ୍ୟକ୍ତି

ନମସ୍କାର ବା ଆଶୀର୍ବାଦକରିବ ନାହିଁ, କଲେ ଆଶୀର୍ବାଦତା ଓ ନମସ୍କର୍ତ୍ତା ଉଭୟେ ନରକଗାମୀ ହୁଅନ୍ତି । ୨୦ ।

ନବାନମୃଣ୍ମୟେ ପାକଂ କୁରୁତେ ଯୋ ନରାଧମଃ ।
ଅନଲଂ ଯାଚତେ ଦଦ୍ୟାତ୍ତସ୍ୟାକସ୍ତସ୍ୟ ପାକବତ୍ । ୨୧ ।

ନୂତନ ମୃତ୍ତିକା ପାତ୍ରରେ ପାକ କରିବାସମୟରେ ଯେ ନରାଧମ ଅଗ୍ନିପ୍ରାର୍ଥୀକୁ ଅଗ୍ନିଦାନକରେ ତାହାର ସେହି ପାକ ଅଗ୍ନି ପ୍ରାର୍ଥନାକାରୀ ଜନର ପାକତୁଲ୍ୟ ହୁଏ । ୨୧ ।

ଶୂଦ୍ରାୟାଗ୍ନିଂ ଯୋଦଦ୍ୟାତ୍ପାକକାଲେ ବିଶେଷତଃ ।
ଶୂଦ୍ରପକ୍ୱଂ ଭବେଦନ୍ନଂ ବ୍ରାହ୍ମଣସ୍ତଦ୍ବିବର୍ଜୟେତ୍ । ୨୨ ।

ଯେ ବ୍ୟକ୍ତି ପାକକାଳରେ ଶୂଦ୍ରକୁ ଅଗ୍ନି ଦିଏ ସେହି ଅନ୍ନ ଶୂଦ୍ରର ପାକାନ୍ନ ହୁଏ ଅତଏବ ବ୍ରାହ୍ମଣ ତାହା ବର୍ଜନ କରିବ । ୨୨ ।

ଆୟୁଷ୍ୟଂ ପ୍ରାଙ୍ମୁଖୋ ଭୁଙ୍କ୍ତେ ଯଶସ୍ୟଂ ଦକ୍ଷିଣାମୁଖଃ ।
ଶ୍ରିୟଂ ପ୍ରତ୍ୟଙ୍ମୁଖୋ ଭୁଙ୍କ୍ତେ ଋତଂ ଭୁଙ୍କ୍ତେ ହ୍ୟୁଦଙ୍ମୁଖଃ ।୨୩

ଆୟୁଷକାମୀ ନର ପୂର୍ବମୁଖହୋଇ ଭୋଜନ କରିବ । ଯଶସ୍କାମୀଜନ ଦକ୍ଷିଣମୁଖହୋଇ ଭୋଜନ କରିବ । ଶ୍ରୀ କାମୀ ବ୍ୟକ୍ତି ପଶ୍ଚିମମୁଖ ହୋଇ ଭୋଜନ କରିବ ଓ ଋତସ୍କାମୀ ବ୍ୟକ୍ତି ଉତ୍ତରମୁଖ ହୋଇ ଭୋଜନ କରିବ । ୨୩ ।

ପରିବେଷଣକାଳେ ଚ ଭୋକ୍ତାରଂ ସ୍ପୃଶତି ଯଦି ।
ତଦୁଚ୍ଛିଷ୍ଟଂ ଭବେଦନ୍ନଂ ପରୀବର୍ଜ୍ୟମିତି ସ୍ମୃତିଃ । ୨୪ ।

ଭୋଜନ କରିବାସମୟରେ ପରିବେଷଣକାରୀ ଯେବେ ଭୋଜନ କରୁଥିବା ଲୋକକୁ ଛୁଇଁ ପକାଏ ତେବେ ସେହି ଅନ୍ନ ପରିବେଷକର ଉଚ୍ଛିଷ୍ଟ ହୁଏ । କିନ୍ତୁ ପତ୍ନୀ ପତିଙ୍କ ପରଷି ଦେଉଥିଲେ ଦୋଷ ହୁଏ ନାହିଁ ଏହା ସ୍ମୃତିସମ୍ମତ । ୨୪ ।

ଖାଦିତାର୍ଦ୍ଧଂ ପୁନଃ ଖାଦନ୍ ମୋଦକାନ ଫଳାନି ଚ ।
ପ୍ରତ୍ୟକ୍ଷଂ ଲବଣଞ୍ଚୈବ ଖାଦନ୍ ଗୋମାଂସଭକ୍ଷକଃ । ୨୫ ।

ଅର୍ଦ୍ଧଖାଦିତ ମୋଦକ ଓ ଫଳ ଏବଂ ଦୁଗ୍ଧଲବଣ ପୁନର୍ବାର ଖାଇଲେ ସେ ଭକ୍ଷଣ ଗୋମାଂସ ଭକ୍ଷଣ ତୁଲ୍ୟ ହୁଏ । ୨୫ ।

ଅପୋଶନେ ଅଚମନେ ପୟଃପୀତେଷ୍ୱେଷୁ ଚ ଦ୍ୱିଜଃ ।
ଶବ୍ଦଂ ନ କାରୟେଦ୍ବିପ୍ରଃ କୁର୍ଯ୍ୟାଚ୍ଚେନ୍ନାରକୀ ଭବେତ୍ । ୨୬

ଅପୋଶନ ସମୟରେ ଅଚମନ କାଳରେ ଓ ଜଳପାନସମୟରେ ବ୍ରାହ୍ମଣ କଥା କହିବ ନାହିଁ । ଯେ ବିପ୍ର କଥା କହିବ ସେ ନରକଗାମୀ ହେବ । ୨୬ ।

ତାମ୍ରପାତ୍ରେ ପୟଃପାନଂ ଉଚ୍ଛିଷ୍ଟେ ଘୃତଭୋଜନଂ ।
ଦୁଗ୍ଧେ ଚ ଲବଣପ୍ରାଶଃ ସଦ୍ୟୋ ଗୋମାଂସଭକ୍ଷକଃ । ୨୭ ।

ତାମ୍ରପାତ୍ରରେ ଦୁଗ୍ଧପାନ, ଉଚ୍ଛିଷ୍ଟରେ ଘୃତଭୋଜନ ଏବଂ ଦୁଗ୍ଧରେ ଲୁଣ ମିଶାଇ ଖାଇଲେ ସେ ଭୋଜନ ସଦ୍ୟ ଗୋ-ମାଂସ ଭକ୍ଷଣ ତୁଲ୍ୟ ହୁଏ । ୨୭ ।

ଶଣଶାକଂ ବୃଥା ମାଂସଂ ଦଗ୍ଧମୀନସ୍ୟ ମସ୍ତକଂ ।
ବାର୍ତ୍ତାକୀ ମନ୍ଦ ପାକେନ ଖାଦନ୍ ଗୋ-ମାଂସ ଭକ୍ଷକଃ । ୨୮ ।

ଛଣପଟ ଶାଗ, ଯଜ୍ଞପଶୁ ବ୍ୟତିରିକ୍ତ ମାଂସ, ପୋଡ଼ାମାଛର ମୁଣ୍ଡ, ଅର୍ଦ୍ଧ ସିଦ୍ଧ ବାଇଗଣ, ଭୋଜନ କଲେ ଗୋମାଂସ ତୁଲ୍ୟ ହୁଏ । ୨୮ ।

ଗୋବର୍ଜମାମିଷଂ କ୍ଷୀରଂ ଫଳେ ଜମ୍ବୀରମାମିଷଂ ।
ଆମିଷଂ ରକ୍ତଶାକଞ୍ଚ ସର୍ବଞ୍ଚ ଦଗ୍ଧମାମିଷଂ । ୨୯ ।

ଗୋ ଦୁଗ୍ଧ ଭିନ୍ନ ଦୁଗ୍ଧକୁ ଅମିଷ କୁହାଯାଏ, ଫଳମଧ୍ୟରେ ଜମ୍ବୀର ଅମିଷ, ଶାକମଧ୍ୟରେ ରକ୍ତଶାକ ଅମିଷ ଏବଂ ସମସ୍ତ ପୋଡ଼ା ଦ୍ରବ୍ୟ ଅମିଷ ହୁଏ । ୨୯ ।

ଅଲାବୁ ବର୍ତ୍ତୁଳାକାରା ବାର୍ତ୍ତାକୀ ଦୁଗ୍ଧବର୍ଣ୍ଣିକା ।
ପ୍ରାଣାନ୍ତେଽପି ନ ଭୋକ୍ତବ୍ୟଂ ଦଗ୍ଧମନ୍ନଂ କଳମ୍ବିକା । ୩୦ ।

ବର୍ତ୍ତୁଳାକାର ଅଲାବୁ (ଲାଉ), ଦୁଗ୍ଧବର୍ଣ୍ଣ ବାର୍ତ୍ତାକୀ (ବାଇଗଣ) ଦଗ୍ଧ

ଅନ୍ନ ଓ କଲମ୍ବୀ ଶାକ ଏମାନଙ୍କୁ ପ୍ରାଣାନ୍ତରେ ମଧ୍ୟ ଭୋଜନ କରିବ ନାହିଁ । ୩୦ ।

ମାଷମାମିଷ ମାଂସଞ୍ଚ ମସୂରଂ ନିମ୍ବପତ୍ରକଂ ।
ଭକ୍ଷୟେଦ୍ୱୋ ରବେର୍ବାରେ ସପ୍ତଜନ୍ମନ୍ୟପୁତ୍ରକଃ । ୩୧ ।

ମାଷ (ବିରି), ଅମିଷ, ମାଂସ ମସୂର ଓ ନିମ୍ବପତ୍ର ଏହି ସବୁ ଦ୍ରବ୍ୟ ରବିବାରରେ ଭକ୍ଷଣ କଲେ ସପ୍ତ ଜନ୍ମ ପର୍ଯ୍ୟନ୍ତ ଅପୁତ୍ରିକ ହେବ । ୩୧

ନିମ୍ବଂ ମାଂସଂ ମସୂରଞ୍ଚ ବିଲ୍ବଂ କାଞ୍ଜିକମାର୍ଦ୍ରକଂ ।
ଭକ୍ଷୟେଦ୍ୱୋ ରବେର୍ବାରେ ସପ୍ତଜନ୍ମନ୍ୟପୁତ୍ରକଃ । ୩୨ ।

ନିମ୍ବ, ମାଂସ, ମସୂର, ବେଲ, କାଞ୍ଜିକ (କାଞ୍ଜି) ଓ ଅଦା ଏ ସବୁ ପଦାର୍ଥ ଯେ ବ୍ୟକ୍ତି ରବିବାର ଦିନ ଭୋଜନ କରିବ ସେ ସାତଜନ୍ମ ପର୍ଯ୍ୟନ୍ତ ଅପୁତ୍ରିକ ହେବ । ୩୨ ।

ଅର୍ଦ୍ରକଂ ମଧୁପାନଞ୍ଚ ଯଃ କରୋତି ରବେର୍ଦିନେ ।
ସପ୍ତଜନ୍ମ ଭବେଦ୍ରୋଗୀ ଜନ୍ମ ଜନ୍ମ ଦରିଦ୍ରତା । ୩୩ ।

ଯେଉଁ ଲୋକ ରବିବାର ଦିନ ଅଦା ଓ ମଧୁପାନକରେ ସେ ସପ୍ତ ଜନ୍ମ ପର୍ଯ୍ୟନ୍ତ ରୋଗୀ ହୁଏ ଏବଂ ପ୍ରତି ଜନ୍ମରେ ଦରିଦ୍ର ହୁଏ । ୩୩

ଯାନି କାନି ଚ ପାପାନି ବ୍ରହ୍ମହତ୍ୟାଦିକାନି ଚ ।
ଅନ୍ନମାଶ୍ରିତ୍ୟ ତିଷ୍ଠନ୍ତି ସପ୍ରାପ୍ତେ ହରିବାସରେ । ୩୪ ।

ବ୍ରହ୍ମହତ୍ୟା ପ୍ରଭୃତି ଯେ ସକଳ ପାପ ଉକ୍ତ ହୋଇଅଛି ସେ ସବୁ ପାପ ଏକାଦଶୀ ଦିନ ଅନ୍ନକୁ ଆଶ୍ରୟ କରି ରହନ୍ତି । ଅତଏବ ସେ ଦିନ ଅନ୍ନ ଖାଇବ ନାହିଁ ।୩୪ ।

ଦଶମ୍ୟୈକାଦଶୀ ବିଦ୍ଧା ଗାନ୍ଧାରୀ ତାମୁପାସିତା ।
ତସ୍ୟାଂପୁତ୍ରଶତଂ ନଷ୍ଟଂତସ୍ମାତ୍ତାଂ ପରିବର୍ଜୟେତ୍ । ୩୫ ।

ଦଶମୀ ଯୁକ୍ତ ଏକାଦଶୀରେ ଗାନ୍ଧାରୀ ଉପବାସ କରିଥିଲେ । ସେହି ହେତୁରୁ ତାହାଙ୍କର ଶତପୁତ୍ର ନଷ୍ଟହୋଇଥିଲେ ଏହିହେତୁରୁ ଦଶମୀ ଯୁକ୍ତ ଏକାଦଶୀରେ ଉପବାସ କରିବ ନାହିଁ । ୩୫ ।

ଦ୍ୱାଦଶ୍ୟାଃ ପ୍ରଥମଃ ପାଦୋ ହରିବାସରସଂଜ୍ଞକଃ ।
ତମତିକ୍ରମ୍ୟ କୁର୍ବୀତ ପାରଣଂ ବିଷ୍ଣୁତତ୍ପରଃ । ୩୬ ।

ଦ୍ୱାଦଶୀତିଥିର ପ୍ରଥମପାଦର ନାମ ହରିବାସର, ବିଷ୍ଣୁପରାୟଣ ବ୍ୟକ୍ତି ତାହାକୁ ପରିତ୍ୟାଗ କରି ପାରଣ କରିବ । ୩୬ ।

ନକ୍ତଂ ହବିଷ୍ୟାନ୍ନମନୋଦନଂ ବା
ଫଳଂ ତିଳାଃ କ୍ଷୀରମଥାମ୍ବୁ ଚାଜ୍ୟଂ ।
ଯତ୍ପଞ୍ଚଗବ୍ୟଂ ଯଦି ବାଥ ବାୟୁଃ
ପ୍ରଶସ୍ତମତ୍ରୋତ୍ତରମୁତ୍ତରଞ୍ଚ । ୩୭ ।

ନକ୍ତ ଭୋଜନ ସମୟରେ ହବିଷ୍ୟାନ୍ନ; ଓଦନ ଭିନ୍ନ ଭୋଜ୍ୟବସ୍ତୁ ଫଳ, ତିଳ, ଦୁଗ୍ଧ, ଜଳ, ଘୃତ, ପଞ୍ଚଗବ୍ୟ ଓ ବାୟୁ ଏସମସ୍ତ ଉତ୍ତରୋତ୍ତର ପ୍ରଶସ୍ତ । ୩୭ ।

ମଚ୍ଛୟନେ ମଦୁତ୍ଥାନେ ମତ୍ପାର୍ଶ୍ୱପରିବର୍ତ୍ତନେ ।
ଫଳମୂଳଜଳାହାରୀ ହୃଦି ଶଲ୍ୟଂ ମମାର୍ପୟେତ୍ । ୩୮ ।

ଭଗବାନ୍ କୃଷ୍ଣ କହିଛନ୍ତି ମୋହର ଶୟନରେ, ମୋହର ଉତ୍ଥାନରେ ଓ ପାର୍ଶ୍ୱପରିବର୍ତ୍ତନରେ, ଏକାଦଶୀରେ, ଫଳ, ମୂଳ ଓ ଜଳ ଆହାର କଲେ ମୋହର ହୃଦୟରେ ଶଲ୍ୟ ଅର୍ପଣ କରିବା ତୁଲ୍ୟ ହୁଏ । ୩୮ ।

ଅକ୍ଷକ୍ରୀଡା ଦିବାନିଦ୍ରା ପୁନର୍ଭୋଜନମୈଥୁନଂ ।
ଶାକଂ ଦଧି ପରାନ୍ନଞ୍ଚ ବର୍ଜୟେତ୍ ପାରଣାଦିନେ । ୩୯ ।

ପଶାଖେଳ, ଦିବାନିଦ୍ରା, ପୁନର୍ଭୋଜନ, ମୈଥୁନ, ଶାକ, ଦଧି, ପରାନ୍ନ, ଏମାନଙ୍କୁ ପାରଣା ଦିବସରେ ତ୍ୟାଗକରିବ । ୩୯ ।

---

* ଦିବସସ୍ୟାଷ୍ଟମେ ଭାଗେ ମନ୍ଦୀଭୂତେ ଦିବାକରେ ।
ତନ୍ନକ୍ତଂ ବିଜାନୀୟାନ୍ନ ନକ୍ତଂ ନିଶିଭୋଜନଂ ।

ଚତୁର୍ଦ୍ଦଶ୍ୟାଷ୍ଟମୀ ଚୈବ ଅମାବାସ୍ୟାଥ ପୂର୍ଣ୍ଣିମା ।
ପର୍ବାଣ୍ୟେତାନି ରାଜେନ୍ଦ୍ର ! ରବିସଂକ୍ରାନ୍ତିରେବଚ ।
ସ୍ତ୍ରୀତୈଳମାଂସସମ୍ଭୋଗୀ ପର୍ବସ୍ୱେତେଷୁ ବୈପୁମାନ୍ ।
ବିଣ୍ମୂତ୍ର ଭୋଜନଂ ନାମ ପ୍ରଯାତି ନରକଂ ମୃତଃ । ୪୦ ।

ହେ ରାଜେନ୍ଦ୍ର ଚତୁର୍ଦ୍ଦଶୀ, ଅଷ୍ଟମୀ, ଅମାବାସ୍ୟା, ପୂର୍ଣ୍ଣିମା ଓ ରବିସଂକ୍ରମଣ, ଏମାନଙ୍କୁ ପର୍ବଦିବସ କହନ୍ତି । ଏଥିରେ ସ୍ତ୍ରୀସମ୍ଭୋଗ, ତୈଳ-ଗ୍ରହଣ ଓ ମାଂସଭୋଜନ କରିବ ନାହିଁ, ଯେ ବ୍ୟକ୍ତି ପର୍ବଦିବସରେ ଏହା କରେ ସେ ପ୍ରାଣାନ୍ତେ ବିଣ୍ମୂତ୍ର ଭୋଜନ ନାମକ ନରକରେ ପତିତ ହୁଏ । ୪୦ ।

କାର୍ତ୍ତିକେ ମାସି ଯୋ ଦଦ୍ୟାତ୍ ପ୍ରଦୀପଂ ସର୍ପିଷାନ୍ୱିତା ।
ଆକାଶେ ମଣ୍ଡପେ ବାପି ସତ୍ୟକ୍ଷୟ୍ୟଫଳଂ ଲଭେତ୍ । ୪୧ ।

କାର୍ତ୍ତିକ ମାସରେ ଯେ ବ୍ୟକ୍ତି ଆକାଶରେ ବା ମଣ୍ଡପରେ ଘୃତ ଦୀପ ଦାନ କରେ ସେ ଅକ୍ଷୟ ଫଳ ଲାଭକରେ । ୪୧ ।

ସଂକ୍ରାନ୍ତ୍ୟାଂ ପକ୍ଷୟୋରନ୍ତେ ଦ୍ୱାଦଶ୍ୟାଂ ଶ୍ରାଦ୍ଧବାସରେ ।
ସାୟଂ ସନ୍ଧ୍ୟା ନ କୁର୍ବୀତ କୁର୍ବତେ ପିତୃହାଭବେତ୍ । ୪୨ ।

ସଂକ୍ରାନ୍ତି, ପକ୍ଷଦ୍ୱୟରଅନ୍ତ, ଦ୍ୱାଦଶୀ, ଓ ଶ୍ରାଦ୍ଧଦିବସରେ ଯେ ସାୟଂ ସନ୍ଧ୍ୟା କରେ ସେ ପିତୃଘାତହୁଏ । ୪୨ ।

ସଂକ୍ରାନ୍ତ୍ୟାଂ ପକ୍ଷୟୋରନ୍ତେ ଦ୍ୱାଦଶ୍ୟାଂ ନିଶି ସନ୍ଧ୍ୟୟୋଃ ।
ତୁଳସୀଚ୍ଛେଦନେନୈବ ବିଷ୍ଣୋଃ ଶିରଶ୍ଛେଦନଂ । ୪୩ ।

ସଂକ୍ରାନ୍ତି, ପକ୍ଷଦ୍ୱୟରଅନ୍ତ, ଦ୍ୱାଦଶୀ, ରାତ୍ରିରେ ଓ ସନ୍ଧ୍ୟାସମୟରେ ଯେ ତୁଳସୀ ପତ୍ର ତୋଳଇ ସେ ବିଷ୍ଣୁ ମସ୍ତକ ଛେଦନଜନ୍ୟ ପାପଫଳ ଭୋଗ କରେ । ୪୩ ।

ସ୍ୱନିର୍ମ୍ମିତଂ ଧୃତଂ ମାଲ୍ୟଂ ସ୍ୱୟଂ ଘୃଷ୍ଟଞ୍ଚ ଚନ୍ଦନଂ ।
ନାପିତସ୍ୟ ଗୃହେ କ୍ଷୌରଂ ଶକ୍ରାଦପିହରେଚ୍ଛ୍ରିୟଂ । ୪୪ ।

ଯେ ସ୍ୱନିର୍ମ୍ମିତ ମାଲ୍ୟ ଧାରଣ, ସ୍ୱଘୃଷ୍ଟଚନ୍ଦନ ଲେପନ, ନାପିତ ଗୃହରେ

କ୍ଷୌର କର୍ମକରେ ସେ ଇନ୍ଦ୍ରତୁଲ୍ୟ ହୋଇଥିଲେ ମଧ୍ୟ ତାହାକୁ ଲକ୍ଷ୍ମୀ ପରିତ୍ୟାଗ କରନ୍ତି । ୪୪ ।

ଅଜାରଜଃ ଖରୋଷ୍ଟ୍ରରଜୋ ଗୃହସମ୍ମାର୍ଜନୀ ରଜଃ ।
ସୂର୍ପବାତଃ ସ୍ପୃଶେଦଙ୍ଗେ ଶକ୍ରାଦପି ହରେଚ୍ଛ୍ରିୟଂ । ୪୫ ।

ଛାଗର ପଦରଜ, ସ୍ତ୍ରୀର ରଜ, ଘର ଝଡ଼ା ଧୂଳି ଓ କୁଲା ବା, ଏସବୁ ଅଙ୍ଗରେ ସ୍ପର୍ଶ କଲେ ଶକ୍ର ତୁଲ୍ୟ ହୋଇଥିଲେ ମଧ୍ୟ ଲକ୍ଷ୍ମୀ ଛାଡ଼ିଯାନ୍ତି ।୪୫

ରବୌ ଦୁଃଖଂ ସୁଖଂ ଚନ୍ଦ୍ରେ କୁଜେ ମୃତ୍ୟୁ ର୍ବୁଧେ ବଲଂ ।
ମାନଂହନ୍ତି ଗୁରୋର୍ବାରେ ଶୁକ୍ରେ ଶୁକ୍ରକ୍ଷୟୋ ଭବେତ୍ ।
ଶନୌ ଚ ସର୍ବଦୋଷାଣି କ୍ଷୌରକର୍ମାଣି ବର୍ଜୟେତ୍ । ୪୬ ।

ରବିବାରରେ କ୍ଷୌର ହେଲେ ଦୁଃଖ, ସୋମବାରରେ ସୁଖ, ମଙ୍ଗଳ ବାରରେ ମୃତ୍ୟୁ, ବୁଧବାରରେ ବଳ, ଗୁରୁବାରରେ ମାନ ନାଶ, ଶୁକ୍ର-ବାରରେ ଶୁକ୍ରକ୍ଷୟ ଓ ଶନିବାରରେ ସର୍ବଦୋଷ ହୁଏ । ଅତଏବ ବୁଧ ଓ ସୋମ ଭିନ୍ନ ଅନ୍ୟବାରମାନଙ୍କରେ କ୍ଷୌର କର୍ମ ବର୍ଜନ କରିବ । ୪୬

ମନ୍ଦମଙ୍ଗଳଷଷ୍ଠୀଷୁ ଦ୍ୱାଦଶ୍ୟାଂ ଶ୍ରାଦ୍ଧବାସରେ ।
ବସ୍ତ୍ରାଣାଂ କ୍ଷାରସଂଯୋଗାଦହତ୍ୟାସପ୍ତସକୁଲଂ । ୪୭ ।

ଶନି ଓ ମଙ୍ଗଳବାରରେ, ଷଷ୍ଠୀ ଓ ଦ୍ୱାଦଶୀ ତିଥିରେ ଶ୍ରାଦ୍ଧଦିବସରେ ଲୁଗାଧୋବାଘରେ ପକାଇଲେ ସେହି ଦଣ୍ଡଧାର ସପ୍ତ କୁଳ ପର୍ଯ୍ୟନ୍ତ ଦଗ୍ଧ କରେ । ୪୭ ।

ନାରିକେଳୋଦକଂ କାଂସ୍ୟେ ତାମ୍ରପାତ୍ରେ ସ୍ଥିତଂମଧୁ ।
ଗବ୍ୟଞ୍ଚତାମ୍ରପାତ୍ରସ୍ଥଂ ମଦ୍ୟତୁଲ୍ୟଂ ଘୃତଂ ବିନା । ୪୮ ।

ନାରିକେଳୋଦକ କାଂସ୍ୟପାତ୍ରରେ, ମଧୁ ତାମ୍ରପାତ୍ରରେ, ଓ ଅନ୍ୟ-ଘୃତଭିନ୍ନ ଗୋ ଘୃତ ତାମ୍ରପାତ୍ରରେ ରଖିଲେ ମଦ୍ୟ ତୁଲ୍ୟ ହୁଏ । ୪୮ ।

ମକରେ ମୂଳକଞ୍ଚୈବ ସିଂହେ ଶୃଙ୍ଗବୃକସ୍ତଥା ।
କାର୍ତ୍ତିକେ ଶୂରଣଂ ଭକ୍ଷନ୍ ଗୋ ମାଂସାଶୀ ଭବେନ୍ନରଃ । ୪୯ ।

ମାଘମାସରେ ମୂଳା ଭାଦ୍ରମାସରେ ଲାଉ, କାର୍ତ୍ତିକମାସରେ ଓଲ୍ଲଅ ଖାଇଲେ ନର ଗୋ ମାଂସ ଭକ୍ଷଣ କରେ । ୪୯ ।

ମକ୍ଷିକା ସନ୍ତତିର୍ଦାରା ମାର୍ଜାରୋ ବ୍ରହ୍ମବନ୍ଧବଃ ।

ସ୍ତ୍ରୀମୁଖଂ ବାଳକାସ୍ୟଞ୍ଚ ନ ଦୁଷ୍ଟଂ ମନୁରବ୍ରବୀତ୍ । ୫୦ ।

ମକ୍ଷିକା, ସ୍ତ୍ରୀସ୍ୱସନ୍ତାନ, ଭାର୍ଯ୍ୟା, ମାର୍ଜାର, ବେଦପଢ଼ିବା ସମୟରେ ମୁଖ-ନିର୍ଗତ ବିନ୍ଦୁ, ସ୍ତ୍ରୀର ମୁଖ ଓ ବାଳକର ମୁଖ ଦୂଷଣୀୟ ଅର୍ଥାତ୍ ଅଶୁଚି ହୁଏ ନାହିଁ । ୫୦ ।

କଳମ୍ବୀଞ୍ଚ ସୁରଙ୍ଗଞ୍ଚ ବାର୍ତ୍ତାକିଂ ସାଗର ସ୍ତଥା ।

ଭକ୍ଷୟେଦ୍ୱୋହବକ୍ଷ୍ୟେ ଚ ଗୋମାଂସାଶୀ ନଗଦ୍ୟତେ । ୫୧ ।

କଳମ୍ବୀ ନାଗରଙ୍ଗ, ବାର୍ତ୍ତାକି ଓ ସାଗର ଯେ ହବିଷ୍ୟରେ ଭକ୍ଷଣ କରେ ତାହାଙ୍କୁ ଗୋମାଂସ ଭକ୍ଷଣ କାରୀ କହନ୍ତି । ୫୧ ।

ସୂର୍ଯ୍ୟଗ୍ରହେ ତୁ ନାଶ୍ନୀୟାତ୍ ପୂର୍ବଯାମଚତୁଷ୍ଟୟଂ ।

ଚନ୍ଦ୍ରଗ୍ରହେତୁ ଯାମାଂସ୍ତ୍ରୀନ୍ ବାଲ ବୃଦ୍ଧାତୁରୈର୍ବିନା । ୫୨ ।

ବାଳକ ବୃଦ୍ଧ ଓ ରୋଗୀ ବିନା ଅନ୍ୟ କେହି ଲୋକ ସୂର୍ଯ୍ୟପରାଗରେ ଚାରି ପ୍ରହର ପୂର୍ବରୁ ଓ ଚନ୍ଦ୍ରଗ୍ରହଣରେ ତିନିପ୍ରହରପୂର୍ବରୁ ଭୋଜନ କରିବେ ନାହିଁ । ୫୨ ।

ଏକତାରଂ ନଭେଦୃଷ୍ଟ୍ୱା ସ୍ମର୍ତ୍ତବ୍ୟୋ ନାରଦୋମୁନିଃ ।

ତାବଦ୍ଭବତି ଚଣ୍ଡାଳୋ ଯାବଦନ୍ୟଂ ନ ପଶ୍ୟତି । ୫୩ ।

ଗୋଟିଏ ତାରା ଅକାଶରେ ଦେଖିଲେ ନାରଦ ମୁନିଙ୍କି ସ୍ମରଣ କରିବ । ଯେପର୍ଯ୍ୟନ୍ତ ସେ ଅଉ ଗୋଟିଏ ତାରା ନ ଦେଖିଛୁ ସେ ପର୍ଯ୍ୟନ୍ତ ସେ ଚଣ୍ଡାଳ ହୋଇ ଥାଏ । ୫୩ ।

ଦାନବ୍ରତଂ ତପୋଯଜ୍ଞଂ ଶ୍ରାଦ୍ଧଞ୍ଚ ପିତୃତର୍ପଣଂ ।

ସକଳଂ ନିଷ୍ଫଳଂ ରାଜନ୍ ହରିସଙ୍କୀର୍ତ୍ତନଂ ବିନା । ୫୪ ।

ହେ ରାଜନ୍ ହରିସଙ୍କୀର୍ତ୍ତନ ବ୍ୟତିରେକରେ ଦାନ ବ୍ରତ, ତପସ୍ୟା ଯଜ୍ଞ, ଶ୍ରାଦ୍ଧ, ପିତୃତର୍ପଣ, ଏ ସମସ୍ତ ନିଷ୍ଫଳ । ୫୪ ।

ଆସନେ ପଦମାରୋପ୍ୟ ଯୋଭୁଙ୍କ୍ତେ ବ୍ରାହ୍ମଣଃ କ୍ୱଚିତ୍ ।
ଗ୍ରାସେ ଗ୍ରାସେ ମଳଂ ଭୁଙ୍କ୍ତେ ପାନୀୟଂ ରୁଧିରଂ ଭବେତ୍ । ୫୫ ।

ଆସନ ଉପରେ ପାଦ ରଖି ଯେ ବ୍ରାହ୍ମଣ ଭୋଜନ କରେ ତାହାର ପ୍ରତିଗ୍ରାସରେ ଅନ୍ନ ମଳ ତୁଲ୍ୟ ହୁଏ, ପାନୀୟ ରୁଧିର ତୁଲ୍ୟ ହୁଏ । ୫୫ ।

ଯଦା ଭୋଜନକାଳେ ତୁ ଦୀପନିର୍ବାପଣଂ ଭବେତ୍ ।
କରେଣ ପାତ୍ର ମାଚ୍ଛାଦ୍ୟ ମନସା ଭାସ୍କରଂ ସ୍ମରେତ୍ । ୫୬ ।

ଯେବେ ଭୋଜନକାଳରେ ଦୀପ ଲିଭିଯାଏ ତେବେ ହସ୍ତରେ ଭୋଜନ ପାତ୍ରକୁ ଘୋଡାଇ ରଖି ମନମଧ୍ୟରେ ଭାସ୍କରଙ୍କୁ ସ୍ମରଣ କରିବ । ୫୬ ।

ଅପ୍ରକ୍ଷାଳ୍ୟ ପାଣିପାଦୌ ସ୍ନାତ୍ୱା ଗଚ୍ଛତି ମନ୍ଦିରଂ ।
ସଂବତ୍ସରକୃତଂ ପୁଣ୍ୟଂ ତତ୍କ୍ଷଣାଦେବ ନଶ୍ୟତି । ୫୭ ।

ସ୍ନାନକରି ହସ୍ତ ପାଦ ନଧୋଇ ଯେ ଗୃହକୁ ଯାଏ ତାହାର ସଂବତ୍ସର କୃତ ପୁଣ୍ୟ ତତ୍କ୍ଷଣାତ୍ ନଷ୍ଟହୁଏ । ୫୭ ।

ବନା ପଦେନ ଧୌତେନ ସ୍ନାତ୍ୱା ଗଚ୍ଛତି ମନ୍ଦିରଂ ।
ବର୍ଷକୃତାନି ଧର୍ମାଣି ତତ୍କ୍ଷଣାଦେବ ନଶ୍ୟତି । ୫୮ ।

ସ୍ନାନକରି ପାଦ ନଧୋଇ ଗୃହକୁଗଲେ ବର୍ଷକୃତଧର୍ମ ତତ୍କ୍ଷଣାତ ନଷ୍ଟହୁଏ । ୫୮ ।

ଗୃହେ ସମ୍ପୂର୍ଣ୍ଣ ମାଚାରଂ ପ୍ରବାସେ ଚ ତଦର୍ଦ୍ଧକଂ ।
ତଦର୍ଦ୍ଧଂ ତୀର୍ଥଯାତ୍ରାୟାଂ ପଥି ଶୂଦ୍ରବଦାଚରେତ୍ । ୫୯ ।

ଗୃହରେ ଥିଲେ ସଂପୂର୍ଣ୍ଣ ଆଚାର କରିବ । ପ୍ରବାସରେ ତାହାର ଅଧେ କରିବ ; ତୀର୍ଥ ଯାତ୍ରାରେ ତାହାର ଅଧେ ଓ ବାଟରେ ଶୂଦ୍ରତୁଲ୍ୟ ଆଚାର କରିବ । ୫୯ ।

କୁଷ୍ମାଣ୍ଡେ ତୀର୍ଥହାନିଃ ସ୍ୟାଦ୍ ବୃହତ୍ୟାଂ ନ ସ୍ମରେଦ୍ଧରିଂ ।
ବନ୍ଧୁ ଶତ୍ରୁଃ ପଟୋଳେ ସ୍ୟାଦ୍ଧନହାନିଶ୍ଚ ମୂଳକେ ।

ଦ୍ଵିତୀୟାୟାଂ ତଥା ବୃହତ୍ୟାଂ ଭର୍ଯ୍ୟସ୍ତ୍ରୀ ନସ୍ତ୍ରୀକେ ।
ତାଳେ ଶରୀରନାଶଃ ସ୍ୟାନ୍ନାରିକେଳେଚ ମୂର୍ଖତା ।
ତୁମ୍ବୀ ଗୋମାଂସତୁଲ୍ୟାସ୍ୟାତ୍କଲମ୍ବୀ ଗୋବଧମ୍ପୃକା ।
ଶିମ୍ବୀ ପାପକରୀ ପ୍ରୋକ୍ତା ପୂତିକା ବ୍ରହ୍ମଘାତିକା ।
ବାର୍ତ୍ତାକୀ ସୁତହାନିଃ ସ୍ୟାଚ୍ଚିରରୋଗୀଚ ମାଷକେ ।
ମହାପାପକରଂ ମାଂସଂ ପ୍ରତିପଦାଦିଷୁ ବର୍ଜୟେତ୍ । ୭୦ ।

ପ୍ରତିପଦ୍ତିଥିରେ କୁଷ୍ମାଣ୍ଡ ଭକ୍ଷଣକଲେ ଅର୍ଥହାନି ହୁଏ । ଦ୍ଵିତୀୟାରେ ବୃହତୀ ଭକ୍ଷଣକଲେ ପ୍ରାଣୀ ହରିଙ୍କୁ ସ୍ମରଣ କରେ ନାହିଁ । ତୃତୀୟାରେ ପଟୋଳ ଭକ୍ଷଣକଲେ ଶତ୍ରୁ ବୃଦ୍ଧି ଚତୁର୍ଥୀରେ ମୂଳକ ଭକ୍ଷଣକଲେ ଧନ ହାନି, ପଞ୍ଚମୀରେ ବିଲ୍ୱଭକ୍ଷଣକଲେ କଳଙ୍କ, ଷଷ୍ଠୀରେ ନିମ୍ବ ଭକ୍ଷଣ କଲେ ତିର୍ଯ୍ୟକ୍ଯୋନିକୁ ପ୍ରାପ୍ତହୁଏ, ସପ୍ତମୀରେ ତାଳଭକ୍ଷଣକଲେ ଶରୀର ବିନାଶ, ଅଷ୍ଟମୀରେ ନାରିକେଳଭକ୍ଷଣକଲେ ମୂର୍ଖତା, ନବମୀରେ ଅଲାବୁ ଭକ୍ଷଣ କଲେ ଗୋମାଂସ ଭକ୍ଷଣ ତୁଲ୍ୟ, ଦଶମୀରେ କଳମ୍ବୀ ଭକ୍ଷଣ କଲେ ଗୋବଧ ତୁଲ୍ୟ , ଏକାଦଶୀରେ ଶିମ୍ବୀ ଭକ୍ଷଣ କଲେ ପାପବୃଦ୍ଧି, ଦ୍ଵାଦଶୀରେ ପତିକା ଭକ୍ଷଣ କଲେ ବ୍ରହ୍ମଘାତ, ତ୍ରୟୋଦଶୀରେ ବାର୍ତ୍ତାକୀ ଭକ୍ଷଣ କଲେ ସନ୍ତତି ରହିତ, ଚତୁର୍ଦ୍ଦଶୀରେ ମାଷଭକ୍ଷଣ କଲେ ଚିରରୋଗୀ । ୭୦ ।

କୁଷ୍ମାଣ୍ଡଘାତିନୀ କନ୍ୟା ଦୀପନିର୍ବାପକଃ ପୁମାନ୍ ।
ଅଚିରେଣୈବ କାଳେନ ବଂଶନାଶସ୍ତୟୋର୍ଭବେତ୍ । ୭୧ ।

ଯଦି କୌଣସି ନାରୀ କୁଷ୍ମାଣ୍ଡ ଛେଦନକରିବ ଏବଂ ଯେଉଁ ପୁରୁଷ ଦୀପ ନିର୍ବାଣ କରିବ ସେ ଦୁହିଙ୍କର ବଂଶ ନିକଟରେ ନିଶ୍ଚୟ ବିନାଶ ହେବ ।୭୧ ।

ଭୁକ୍ତ୍ଵା ପିତୃଗୃହେ କନ୍ୟା ଭୁଙ୍କ୍ତେ ସ୍ଵାମିଗୃହେ ଯଦି ।
ଦୌର୍ଭାଗ୍ୟଂ ଜାୟତେ ତସ୍ୟାଃ ସା ସତୀ କୁଳନାଶିକା । ୭୨ ।

ଯେଉଁ କନ୍ୟା ପିତୃଗୃହରେ ଭୋଜନକରି ପୁନର୍ବାର ଯଦି ସ୍ଵାମି ଗୃହରେ

ଭୋଜନକରେ ତେବେ ସେ କନ୍ୟା ନିଶ୍ଚୟ ବଂଶଘାତିନୀ ଓ ଦୌର୍ଭାଗ୍ୟ-ଯୁକ୍ତା ହୁଏ । ୬୨ ।

ଆସନେ ଶୟନେ ଦାନେ ଭୋଜନେ ବସ୍ତ୍ରସଂଗ୍ରହେ ।
ବିବାଦେ ଚ ବିବାହେ ଚ କ୍ଷୁତଂ ସପ୍ତସୁ ଶୋଭନଂ । ୬୩ ।

ଆସନଗ୍ରହଣ, ଶୟନ, ଦାନ, ଭୋଜନ, ବସ୍ତ୍ରସଂଗ୍ରହ, ବିବାଦ, ଓ ବିବାହ ଏହି ସପ୍ତକାଳରେ କ୍ଷୁତ (ଛିଙ୍କ) ମଙ୍ଗଳଜନକ ହୁଏ । ୬୩ ।

ପ୍ରାକ୍‌ଶିରଃ ଶୟନେ ବିଦ୍ୟା ବଲମାୟୁଶ୍ଚ ଦକ୍ଷିଣେ ।
ଉତ୍ତରେ ପ୍ରବଲା ଚିନ୍ତା ହେଲସ୍ୟା ନ ଚ ପଶ୍ଚିମେ । ୬୪ ।

ପୂର୍ବଦିଗରେ ମସ୍ତକ ରଖି ଶୟନ କଲେ ବିଦ୍ୟାଲାଭ, ଦକ୍ଷିଣ ଦିଗରେ ମସ୍ତକ ରଖି ଶୟନ କଲେ ବଳ ଓ ଆୟୁବୃଦ୍ଧି, ଉତ୍ତରଦିଗରେ ମସ୍ତକ ରଖି ଶୋଇଲେ ଅତ୍ୟନ୍ତ ଚିନ୍ତା ହୁଏ । କିନ୍ତୁ ହେଲାରେସୁଦ୍ଧା ପଶ୍ଚିମଦିଗକୁ କଦାପି ମସ୍ତକ ରଖି ଶୋଇବନାହିଁ ।

ଅମୁକ୍ତକଚ୍ଛପୋ ଭୂତ୍ୱା ପ୍ରସ୍ରାବମୁତ୍ସୃଜ ଯୋ ନରଃ ।
ବାମେ ପିତୃମୁଖେ ଦଦ୍ୟା ଦକ୍ଷିଣେ ଦେବତାମୁଖେ ।୬୫ ।

ଯେଉଁ ଲୋକ କଚ୍ଛ ନ ଫିଟାଇ ପ୍ରସାବକରେ ସେ ଲୋକର ମୂତ୍ରଧାରା ଯଦି ବାମଦିଗକୁ ଚଲେ ତାହାହେଲେ ସେ ମୂତ୍ର ପିତୃମୁଖରେ ପଡେ ଯଦି ଦକ୍ଷିଣଦିଗକୁ ଚଲେ ତାହାହେଲେ ଦେବତା ମୁଖରେ ଯାଇ ପଡେ ।

ବାରପାଣଂ କରେ ଧୃତ୍ୱା ମୂତ୍ରଂ ତ୍ୟଜତି ଯୋ ନରଃ ।
ସୁରାପାତ୍ରସମଂ ପାତ୍ରଂ ତଜ୍ଜଲଂ ମଦିରାସମଂ । ୬୬ ।

ଯେଉଁ ଲୋକ ହସ୍ତରେ ଜଳପାତ୍ରଧରି ମୂତ୍ର ତ୍ୟାଗକରେ ସେ ଲୋକର ସେହି ଜଳପାତ୍ର ମଦ୍ୟପାତ୍ରତୁଲ୍ୟ ଓ ଜଳ ମଦ୍ୟତୁଲ୍ୟ ହୁଏ । ୬୬ ।

ଉଚ୍ଚାରେ ମୈଥୁନେ ଚୈବ ପ୍ରସ୍ରାବେ ଦନ୍ତଧାବନେ ।
ସ୍ନାନେ ଭୋଜନକାଲେ ଚ ଷଟ୍‌ସୁ ମୌନଂ ସମାଚରେତ୍ ।୬୭ ।

ମଳତ୍ୟାଗ, ମୈଥୁନ, ମୂତ୍ରତ୍ୟାଗ, ଦନ୍ତଧାବନ, ସ୍ନାନ ଓ ଭୋଜନ ଏହି ଛଅ କାର୍ଯ୍ୟରେ ମୌନାବଲମ୍ବୀ ହେବ ।୬୭ ।

ଚିତାଞ୍ଚ ଚିତିକାଷ୍ଠଞ୍ଚ ଯୂପଂ ଚଣ୍ଡାଳମେବ ଚ ।
ସ୍ପୃଷ୍ଟ୍ୱା ଦେବଲକଞ୍ଚୈବ ସଚୈଲସ୍ନାନମାଚରେତ୍ । ୬୮ ।

ଚିତା, ଚିତିକାଷ୍ଠ, ଯୂପ, ଚଣ୍ଡାଳ ଓ ଦେବଲ ବ୍ରାହ୍ମଣ ଏମାନଙ୍କୁ ସ୍ପର୍ଶ କଲେ ସବସ୍ତ୍ର ସ୍ନାନ କରବ । ୬୮ ।

ସୂର୍ପବାତଂ ପ୍ରେତଧୂମଂ ତଥା ଶୂଦ୍ରାନ୍ନଭୋଜନଂ ।
ବୃଷଳୀ ପତିସଂବାସଂ ଦୂରତଃ ପରିବର୍ଜୟେତ୍ । ୬୯ ।

ସୂର୍ପୋଦ୍ଭବ ବାୟୁ, ଶ୍ମଶାନୋତ୍ଥିତଧୂମ, ଶୂଦ୍ରାନ୍ନଭୋଜନ ଓ ବୃଷଳୀ ପତିର ସହିତ ବାସ ଏ ସମସ୍ତ ଦୂରରୁ ପରବର୍ଜନ କରବ । ୬୯ ।

ଦୀପଖଟ୍ୱାତନୁଚ୍ଛାୟା କେଶମିଶ୍ରୋଦକଂ ତଥା ।
ଅଜମାର୍ଜାରରେଣୁଶ୍ଚ ହନ୍ତି ପୁଣ୍ୟଂ ପୁରାକୃତଂ । ୭୦ ।

ଦୀପଚ୍ଛାୟା, ଖଟଚ୍ଛାୟା, ଦେହଚ୍ଛାୟା, କେଶମିଶ୍ରିତଜଳ ଅଜ ଓ ମାର୍ଜାରର ଧୂଳ ଏମାନେ ପୂର୍ବକୃତ ପୁଣ୍ୟସବୁ ବନାଶ କରନ୍ତ । ୭୦ ।

ଆସନଂ ବସନଂ ଶଯ୍ୟା ଭାର୍ଯ୍ୟା ଶୃପତ୍ୟମେବ ଚ ।
ଆତ୍ମନଃ ଶୁଚ ଚୈତାନ ନ ପରେଷାଂ କଦାଚନ । ୭୧ ।

ଆସନ, ବସ୍ତ୍ର, ଶଯ୍ୟା, ସ୍ତ୍ରୀ ଓ ପୁତ୍ର ଏମାନେ ନଜ ନକଟରେ ଶୁଚି ହୁଅନ୍ତ କନ୍ତୁ ପରନକଟରେ ଅଶୁଚି ହୁଅନ୍ତ । ୭୧ ।

ପାଦେନ ନାକ୍ରମେତ୍ପାଦ ମୁଚ୍ଛିଷ୍ଟଂ ନୈବ ଲଂଘୟେତ୍ ।
ନ ସ୍ୱହସ୍ତଂ ସ୍ୱହସ୍ତାଭ୍ୟାଂ କଣ୍ଡୁୟେଦାତ୍ମନଃ ଶିରଃ । ୭୨ ।

ପାଦରେ ପାଦକୁ ଡେଇଁବ ନାହିଁ । ଉଚ୍ଛିଷ୍ଟକୁ ମଧ୍ୟ ଡେଇଁବନାହିଁ । ଆପଣାର ହାତରେ ଆପଣା ହାତକୁ କୁଣ୍ଡାଇବ ନାହିଁ । ଆଉ ସ୍ୱହସ୍ତରେ ମୁଣ୍ଡ କୁଣ୍ଡାଇବ ନାହିଁ । ୭୨ ।

ମହାଗୁରୁ ନପାତେତୁ କାମ୍ୟଂକର୍ମ୍ନ ଚାଚରେତ୍
ଆର୍ତ୍ୱିଜ୍ୟଂ ବ୍ରହ୍ମଚର୍ଯ୍ୟଞ୍ଚ ଯାବତ୍ପୂର୍ଣ୍ଣୋ ନ ବତ୍ସରଃ । ୭୩ ।

ମହାଗୁରୁ (ପିତା ମାତା ମରଗଲେ ) ବର୍ଷକ ମଧ୍ୟରେ କିଛି କାମ୍ୟ

କରିବ ନାହିଁ । ଅଛି ବ୍ରହ୍ମଚର୍ଯ୍ୟ ଓ ପୌରୋହିତ୍ୟ କର୍ମ ପରିତ୍ୟାଗ କରିବ । ୭୩ ।

ଅନ୍ୟଶ୍ରାଦ୍ଧଂ ପରାନ୍ନଞ୍ଚ ଗନ୍ଧଂ ମାଲ୍ୟଞ୍ଚ ମୈଥୁନଂ ।
ବର୍ଜୟେତ୍ ଗୁରୁପାତେତୁ ଯାବତ୍ପୂର୍ଣ୍ଣୋ ନ ବତ୍ସରଃ । ୭୪ ।

ପିତୃଶ୍ରାଦ୍ଧ ଭିନ୍ନ ଅନ୍ୟଶ୍ରାଦ୍ଧ, ପରାନ୍ନ ଭୋଜନ, ଗନ୍ଧମାଲ୍ୟ ଧାରଣ ଓ ମୈଥୁନ ଏ ସବୁ କର୍ମ ମହାଗୁରୁ ନିପାତରେ ବର୍ଷକ ପର୍ଯ୍ୟନ୍ତ ପରିତ୍ୟାଜ୍ୟ ।

ତୀର୍ଥଯାତ୍ରାଂ ବିବାହଞ୍ଚ ସ୍ୱାଧ୍ୟାୟଂ ଗୃହ୍ୟତର୍ପଣଂ ।
ସଂବତ୍ସରଂ ନ କୁର୍ବୀତ ମହାଗୁରୁନିପାତନେ । ୭୫ ।

ମହାଗୁରୁ ନିପାତରେ ବର୍ଷକ ମଧ୍ୟରେ ତୀର୍ଥଯାତ୍ରା, ବିବାହ ବେଦପାଠ; ପିତୃତର୍ପଣ ଭିନ୍ନ ଅନ୍ୟ ତର୍ପଣ କରିବ ନାହିଁ । ୭୫ ।

ଯାତ୍ରା ଯୁଦ୍ଧଂ ନଦୀପାରଂ ମିଥ୍ୟାଳାପଂ ଦ୍ୱିର୍ଭୋଜନଂ ।
ଦ୍ୟୂତକ୍ରୀଡ଼ା ଦିବାନିଦ୍ରା ଶ୍ରାଦ୍ଧେ ସପ୍ତ ବିବର୍ଜୟେତ୍ । ୭୬ ।

ଶ୍ରାଦ୍ଧଦିବସରେ ଯାତ୍ରା, ଯୁଦ୍ଧ, ନଦୀପାର, ମିଥ୍ୟାଳାପ, ଦୁଇଥର ଭୋଜନ, ପଶାଖେଳ ଓ ଦିବାନିଦ୍ରା ଏହି ସାତ ଗୋଟି କର୍ମ ପରିତ୍ୟାଗ କରିବ । ୭୬ ।

ଅମାୟାଞ୍ଚ ପିତୃଶ୍ରାଦ୍ଧେ ଅମ୍ବୁବାଚି ଦିନତ୍ରୟେ ।
ଲାଙ୍ଗଳେନ କୃତାଘାତା ପୃଥ୍ୱୀ କମ୍ପତେ ସଦା । ୭୭ ।

ଅମାବାସ୍ୟା ତିଥିରେ, ପିତୃଶ୍ରାଦ୍ଧଦିବସରେ, ଅମ୍ବୁବାଚୀରେ, ଏହିଦିନ-ତ୍ରୟରେ ହଳ ବୁଲାଇଲେ ପୃଥ୍ୱୀ କମ୍ପମାନ ହୁଏ । ଅତଏବ ଏଦିନ ମାନଙ୍କରେ ହଳ ନିଷେଧ । ୭୭ ।

କରତୋୟାଜଳଂ ପ୍ରାପ୍ୟ ଯୋଗେ ନାରାୟଣୀଂ ଶୁଭେ ।
ପ୍ରାତର୍ମୌନେନ ଯଃ ସ୍ନାୟାତ୍ କୋଟି କୁଳମୁଦ୍ଧରେତ୍ । ୭୮ ।

ଶୁଭ ନାରାୟଣୀଯୋଗରେ କରତୋୟାର ଜଳ ପାଇ ପ୍ରାତଃକାଳରେ ମୌନ ହୋଇ ଯେ ସ୍ନାନ କରେ ସେ ତିନିକୋଟି କୁଳକୁ ଉଦ୍ଧାର କରେ । ୭୮ ।

ଯତଶ୍ଚ ବ୍ରହ୍ମଚାରୀ ଚ ବଧବା ଚ ଦ୍ୱିଜସ୍ତଥା ।
ଅମ୍ବୁବାଚୀ ଦିନେ ଚୈବ ପାକଂ କୃତ୍ୱା ନ ଭୋଜୟେତ୍ ॥
ସ୍ୱପାକଂ ପରପାକମ୍ବା ଅମ୍ବୁବାଚୀ ଦିନେ ତଥା ।
ବଧବାଶ୍ଚ ନ ଭୋକ୍ତବ୍ୟଂ ଚାଣ୍ଡାଲାନ୍ନେନ ତତ୍ ସମଂ । ୭୯ ।

ଯତି, ବ୍ରହ୍ମଚାରୀ, ବଧବା ଓ ଦ୍ୱିଜ, ଏମାନେ ଅମ୍ବୁବାଚୀଦିନରେ ପାକକରି ଭୋଜନ କରିବେନାହିଁ । ସ୍ୱପାକ ବା ପରପାକ ଓ ଅମ୍ବୁବାଚୀ ଦିନର ପାକଦ୍ରବ୍ୟ କଦାପି ବଧବା ଭୋଜନ କରିବ ନାହିଁ କଲେ ସେ ଭୋଜନ ଚାଣ୍ଡାଲାନ୍ନ ଭୋଜନତୁଲ୍ୟ ହୁଏ । ୭୯ ।

ଅକୃତ୍ୱା ପ୍ରେତକାର୍ଯ୍ୟାଣି ପ୍ରେତସ୍ୟ ଧନହାରକଃ ।
ବର୍ଣ୍ଣାନାଂ ଯଦ୍ବଧେ ପ୍ରୋକ୍ତ ବ୍ରତ୍ତଂ ନିୟତଂ ଚରେତ୍ । ୮୦ ।

ଆଦ୍ୟଶ୍ରାଦ୍ଧାଦି କର୍ମ ନ କରି ଯେ ବ୍ୟକ୍ତି ସେହି ମୃତଜନର ଧନରେ ଅଧିକାରୀ ହୁଏ ସେ ବ୍ୟକ୍ତି ଚାରିବର୍ଣ୍ଣବଧରେ ଯେଉଁପାପ କଥିତଅଛି ସେହି ପାପର ପ୍ରାୟଶ୍ଚିତ୍ତ କରିବ ।

କୁର୍ଯ୍ୟା ଦବଧବା ଶ୍ରାଦ୍ଧଂ ଯବେନାପ୍ୟଥ ଦୂର୍ବୟା ।
ନସ୍ପୃଶେ ତ୍ତିଳଦର୍ଭାଂଶ୍ଚ ଯାବଦ୍ଭର୍ତ୍ତୃ ବଭୂଷିତା । ୮୧ ।

ସଧବା ସ୍ତ୍ରୀ ଶ୍ରାଦ୍ଧ କଲେ ତିଳ, କୁଶ ଓ କାଶ ସ୍ପର୍ଶ କରିବନାହିଁ ବା ବ୍ୟବହାର କରିବ ନାହିଁ । କୁଶ କାଶ ପରିବର୍ତ୍ତରେ ଦୂର୍ବା ଓ ତିଳ ପରିବର୍ତ୍ତରେ ଯବ ବ୍ୟବହାର କରିବ ॥

---

ଇତ୍ୟାଗ୍ରୁରଶିକ୍ଷା ସମାପ୍ତା ॥